# ପିଆଜ ଜାତି ଫସଲ



ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ, ପି, ଏଚ୍, ଡି

# ପିଆଜ ଜାତି ଫସଲ

---


ଲେଖକ:—

**ଡକ୍ଟର ଶ୍ରୀ ବିଶ୍ୱନାଥ ସାହୁ,** ବି. ଏଜି. (ନାଗ),
ଏମ୍. ଏସ୍. ଏ (ଟରଣ୍ଟୋ)
ପି. ଏଚ୍. ଡି. (ମିଶିଗାନ)


---


ନୂତନ ସଂସ୍କରଣ

ପ୍ରକାଶକ--

**ଶ୍ରୀ ନରହରି ନାୟକ**
**ଭାରତୀ ମହଲ**
କେନ୍ଦ୍ରାପଡ଼ା




ମୂଲ୍ୟ—୪୦।/ ଚାରି ଅଣା ମାତ୍ର

# —ସୂଚୀ ପତ୍ର—





# ପିଆଜ ଜାତି ଫସଲ

# BULBS CROPS

## ALLIUM SPECIES

## N.O. LILIACEÆ

ପିଆଜ, ରସୁଣ, ଘି-କୁଆଁରୀ, ବାରବର୍ଷିଆ, ଲିମ୍ବାହୁଆ ଛତାଜରୀ ପ୍ରଭୃତି ଉଦ୍ଭିଦ "ଲିଲିଅସି" ବନୌଷଧି ବର୍ଗଭୁକ୍ତ । ଏହି ବର୍ଗରେ ୨,୬୦୦ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ଉଦ୍ଭିଦ ଅଛି । "ଅଲିୟମ୍" ବର୍ଗ ସେଥି ମଧ୍ୟରୁ ଗୋଟିଏ । ଏହି "ଅଲିୟମ" ଶ୍ରେଣୀରେ ପ୍ରାୟ ୨୫୦ରୁ ୩୦୦ ପ୍ରକାର ଗଛ ଅଛି । ଏମାନଙ୍କ ମଧ୍ୟରୁ ୬ଟି ଉଦ୍ଭିଦ ପନିପରିବା ଫସଲରୂପେ ଚାଷ କରାଯାଏ ।

**ଗଛର ବିଶେଷତ୍ୱ :—** ଗଛର ଚେର ତନ୍ତୁମୟ । ପତ୍ରଗୁଡ଼ିକ ସବୁବେଳେ ମୂଳରୁ ବାହାରେ । ପତ୍ରର ମୂଳ ଭାଗରେ ଖାଦ୍ୟ ଜିନିଷ ଜମାହୋଇ ବଢ଼ିବାରୁ ସେହି ଅଂଶ ଫୁଲି ଗୋଠାଳିଆ ଧରେ । ଗଛ ଚାଙ୍କଳ ହେଲେ ତହିଁରୁ ଶଣ୍ଢା ବାହାରେ । ଶଣ୍ଢା ଅଗରେ ବହୁଆ ଭର୍ତ୍ତି ପର ଫୁଲଗୁଚ୍ଛ ଥାଏ । ଫୁଲ ଗୁଚ୍ଛ କଡ ଅବସ୍ଥାରେ ଗୋଟିଏ ଝିଲ୍ଲିରେ ଘୋଡ଼େଇ ହୋଇ ଥାଏ । ଫୁଲ ଫୁଟିଲେ ଏହି ଝିଲ୍ଲି ଫାଟି ଯାଏ ।

ପ୍ରତି ଫୁଲରେ ବୃନ୍ତ ଏବଂ ପାଖୁଡ଼ା ମିଳି ଗୋଟିଏ ମୋଟା ଗ୍ଭେପା ପରି ରହେ । ଗ୍ଭେପାଟି ଛଅଟି ଶାଖାରେ ବିଭକ୍ତ ହୋଇଥାଏ । ଗ୍ଭେପା ଧଳା, ଶାଗୁଆ, ହଳଦିଆ, ବାଇଗଣି ବା ପାଟଳ ରଙ୍ଗ ଦେଖାଯାଏ । ଫୁଲରେ ଛଅଟି ପରାଗକେଶର ଥାଏ । ଗର୍ଭକେଶରର ଭ୍ରୂଣ ତିନୋଟି ଖୋପରେ ବିଭକ୍ତ । ପ୍ରତ୍ୟେକ ଖୋପରେ ଦୁଇଟି ଲେଖାଏଁ ଡିମ୍ବାଣୁ ଥାଏ । ଫଳ ଗୋଟାଳିଆ ଏବଂ ମଞ୍ଜି କାଳିଆ ।

**ପିଆଜ ଓ ରସୁଣ ଗନ୍ଧାଏ କାହିଁକି ?** ଆଲିୟମ ବର୍ଗର ପ୍ରତ୍ୟେକ ଜାତର ଫସଲର ଏକ ବିଶିଷ୍ଟ ଗନ୍ଧ ଅଛି । ଏହି ଉଦ୍‌ବାୟୀ ଗନ୍ଧକ ହେତୁ "ଆଲାଇଲ ସଲଫାଇଡ୍" (୧) ନାମକ ମିଶ୍ର ପଦାର୍ଥ ସହିତ ମିଶି କରି ଥାଏ ।

**ଶ୍ରେଣୀ ବିଭାଗ :—** ଚାଷ କରା ଯାଉଥିବା ପିଆଜ ଜାତ ଫସଲ ଗୁଡ଼ିକୁ ସାଧାରଣତଃ ଛଅଟି ଶ୍ରେଣୀରେ ଭାଗ କରା ଯାଇଥାଏ । ଯଥା:—





(୧) Allyl sulphide——— { C3 H7—S / C3 H5—S

'ଆଲିୟମ୍' ଜାତର ଶ୍ରେଣୀ ବିଭାଗ ସୂଚନା—

୧- ପତ୍ର ଚଉଡ଼ା ଏବଂ ଚେପ୍ଟା ।

(କ) ବଲ୍‌ବଟି କେତେଗୁଡ଼ିଏ ଛୋଟ ଛୋଟ କୋଷରେ ତିଆରି———————ରସୁଣ

( A. Sativum )

(ଖ) ବଲ୍‌ବ ଗୋଟାଏ ମାତ୍ର କୋଷରେ ଗଢ଼ା···ଲିକ୍

( A. Porrum )

୨- ପତ୍ର ପୋଲା, ଢୋଲ୍ ପରି କିମ୍ବା ଅଗ ଗୋଲିଆ

(କ) ବଲ୍‌ବ ଗୋଟାଳିଆ, ଗୋଟାଏ ନଚେତ୍ ଦୁଇ ତିନୋଟି ଏକାଠି ଥାଏ·········· ······ପିଆଜ

( A. Cepa )

(ଖ) ବଲ୍‌ବ ଛୋଟ ଛୋଟ ବେକ ଅପେକ୍ଷା ଗଣ୍ଠି ମୋଟ··· ···ୱେଲ୍‌ସ ପିଆଜ

( A. Fistulosum )

(ଗ) ପତ୍ରଗୁଡ଼ିକ ଅତି ଛୋଟ ଛୋଟ, ବଲ୍‌ବଗୁଡ଼ିକ ପେନ୍ଥାଟିଏ ପରି ଲାଗି ରହିଥାଏ·····················ଶାଲଟ

( A. Ascalonicum )

୩- ଜାତଟି ବହୁ ବାର୍ଷିକ, ପିଆଜଗୁଡ଼ିକ ଛୋଟ ଛୋଟ···ଚାଇଭ

( A. Schoenoprasum )

ଏହି ଛଅଟି ପରିବା ମଧ୍ୟରୁ ପିଆଜ ଏବଂ ରସୁଣ ଓଡ଼ିଶାରେ ଚାଷ କରାଯାଏ । ଲିକ୍, ୱେଲ୍‌ସ ପିଆଜ, ଶାଲଟ୍ ଏବଂ ଚାଇଭ୍ ଶୀତ ପ୍ରଧାନ ଦେଶର ପରିବା ।

---

# ପିଆଜ

# ONION
## (ALLIUM CEPA

ଆଦମ ମାନବ ଯେତେକ ଫସଲ ଚାଷ କରୁଥିଲା, ପିଆଜ ସେମାନଙ୍କ ମଧ୍ୟରୁ ଗୋଟିଏ । ସ୍ୱେଜ ଅନ୍ତରୀପ ପାଖରେ "ଓନିଅସ" ମାନେ ଗୋଟିଏ ନଗର ବସାଇଥିଲେ । ଏହି ନଗରଟି ଖ୍ରୀଷ୍ଟପୂର୍ବ ୧୨୩ ଅବ୍ଦରେ ବଡ଼ ସମୃଦ୍ଧିଶାଳୀ ଥିଲା । ସେହି ସହରର ଅଖ-ପାଖରେ ପିଆଜ ଚାଷ ହେଉଥିଲା । "ଓନିଅସ"ରୁ ଇଂରେଜର ପିଆଜର ପରିଭାଷା "ଓନିଅନ୍" ଶବ୍ଦ ଉତ୍ପତ୍ତି । ପିଆଜ ବର୍ଣ୍ଣଜାତ ଦ୍ରବ୍ୟ ନୁହେଁ । ମିଶର ଦେଶୀୟ ଏବଂ ଇହୁଦମାନେ ପିଆଜ ପ୍ରିୟ । ଚିନ୍ ଦେଶରେ ଏବଂ ଏସିଅ ମହାଦେଶର ପଶ୍ଚିମାଞ୍ଚଳରେ ପିଆଜ ଚାଷ ହୁଏ ।

**ପିଆଜ ଗଛର ଜୀବନୀ:—** ପିଆଜ ଏକ ବୀଜଦଳ ଉଦ୍ଭିଦ ।

**ଚେର:—** ପିଆଜ ଚେର ତନ୍ତୁମୟ । କନ୍ଦା ମୂଳରୁ ଗୋଛାଏ ଚେର ଚାରିଦଗକୁ ମେଲି ବଢେ । ଏହି ଚେରଗୁଡ଼ିକ ପ୍ରାୟ ୧୦ ଇଞ୍ଚରୁ ଅଧିକ ଗଭୀରତା ପର୍ଯ୍ୟନ୍ତ ଯାଏ ନାହିଁ । ଗଛ ଦୁଇ ପାଟରେ ୨ଇଞ୍ଚ ପର୍ଯ୍ୟନ୍ତ ଚେର ମାଡ଼େ ।

**କାଣ୍ଡ:—** ପିଆଜର କାଣ୍ଡ ଅତି ସାମାନ୍ୟ । ତାହା ପ୍ରାୟ ଦେଖାଯାଏ ନାହିଁ ।

**ପତ୍ର:—** ପତ୍ରଗୁଡ଼ିକ କାଣ୍ଡରୁ ବାହାରେ । ବାହାର ପତ୍ରଗୁଡ଼ିକ ଅଗ ଏବଂ ପୁରୁଣା; ଭିତର ପତ୍ରଗୁଡ଼ିକ ପତଳ ଏବଂ କଅଁଳ । ପତ୍ର

ଗୁଣ୍ଡିକ ପତ୍ର ଏବଂ ସମାନ୍ତର ଶିର ବଶିଷ୍ଟ । ପତ୍ରର ତଳ ଅଂଶରେ ଶ୍ୱେତସାର ଜମା ହେବାରୁ ଫୁଲି ଉଠେ । ତାହାହିଁ ପିଆଜ ଅଟେ ।

**ପୁଷ୍ପବିନ୍ୟାସ :—** ଗଛ ପାକଳ ହେଲେ ଶଣ୍ଢା ବାହାରେ । ଶଣ୍ଢା ମୁଣ୍ଡରେ ଫୁଲ ଥାଏ । କଅଁଳବେଳେ ଫୁଲଗୁଡ଼ିକ ଗୋଟାଏ ଝିଲ୍ଲିରେ ଘୋଡ଼ାଇ ହୋଇଯାଏ । ଫୁଲ ପାକଳ ହେଲେ ଏହି ପର୍ଦ୍ଦା ଫାଟି ଯାଏ ।

**ପିଆଜ**ର ପୁଷ୍ପବିନ୍ୟାସକୁ 'ଅମ୍ବେଲ୍' ( Umbel ) କୁହାଯାଏ । ଗୋଟିଏ ଅମ୍ବେଲରେ ୫୦ରୁ ୨,୦୦୦ ପର୍ଯ୍ୟନ୍ତ ଫୁଲ ଥାଏ ।

୬ଟି ପୁଂକେଶର ଦୁଇଧାଡ଼ିରେ ଥାଏ । ପ୍ରତି ଧାଡ଼ିରେ ୩ଟି ଲେଖାଏଁ ପୁଂକେଶର ଥାଏ । ଗର୍ଭକେଶରରେ ତନୋଟି ଖୋପ ଥାଏ ।

ଗୋଟିଏ ଶଣ୍ଢାର ଫୁଲଗୁଡ଼ିକ ପୂରାପୂରି ଫୁଟିବାକୁ ପ୍ରାୟ ୩୦ ଦିନ ଲାଗେ । କୀଟ ପତଙ୍ଗ ଦ୍ୱାରା ପରାଗ ସଙ୍ଗମ ହୁଏ । ସକାଳ ୯ଟାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ପରାଗ ରେଣୁ ଝଡ଼େ ।

**ପିଆଜ ପ୍ରକାର :—** ପିଆଜର ଆକାର ଏବଂ ଗୁଣ ଦୃଷ୍ଟିରୁ ଦୁଇ ଭାଗରେ ବିଭକ୍ତ କରା ଯାଏ । ଯଥା—

**୧— ନାଲି, ଇଦଶା ବା ଛଟ ( Allium cepa var solaninum, କିମ୍ବା Var multiplicans )**

ଗୋଟିଏ ପିଆଜ ଲଗାଗଲେ ଦୁଇ ତିନୋଟା କୋଲି ବାହାରେ । ପ୍ରତ୍ୟେକ କୋଲିରୁ ଗୋଟିଏ ଶଣ୍ଢା ବାହାରେ; ଯଥା— ଚିପୁର, ବମ୍ବା । ପିଆଜ ରଙ୍ଗ ତମ୍ବା ପରି ଲାଲ୍ ଏବଂ ବହୁତ ରାଗୁଆ । ଅନେକ ପ୍ରକାର ଯୁକ୍ତରାଷ୍ଟ୍ରରେ ବର୍ମୁଡ଼ା, ଗ୍ରାନୋ ଏହି ଶ୍ରେଣୀର ଅନ୍ତର୍ଗତ । ଏଗୁଡ଼ିକ ବଢିବା ଲାଗି ଛୋଟ ଦିନ ଦରକାର ।

**୨—ଧଳା (Allium cepavar viviparum ବା Bulbi ferum)**

ଓଲି ପିଆଜ ଫୁଲ ମଧ୍ୟରୁ କେତେକରେ ଛୋଟ ଛୋଟ ପିଆଜ ଧରେ । ସେହି ପିଆଜକୁ ଗଛରୁ ତୋଳି ଲଗାଇଲେ ସାଙ୍ଗେ ସାଙ୍ଗେ ଗଛ ହୁଏ । ପିଆଜ ଚୋଟାଳିଆ ଏଥିରେ ବୋଲା ନ ଥାଏ ।

ଓଲି ପିଆଜ ଧଳା, ହଳଦିଆ ଏବଂ ଲାଲ ଜାତର ଥାଏ । ଅଟେମରିକାର ଯୁକ୍ତରାଷ୍ଟ୍ରରେ ପ୍ରାୟ ୨୧ ଜାତ ପିଆଜ ଅଛି ।
(୧) ଧଳା- ସାଉଥପୋର୍ଟ ଧଳା ଗ୍ଲୋବ, ମିଠାସ୍ପାନିଶ
(୨) ହଳଦିଆ- ଇବେନେଜର ( Ebenezer ), ୟୁଲୋ ଗ୍ଲୋବ ( Yellowglope )(୩) ଲାଲ— ରେଡ୍ ଗ୍ଲୋବ ।

ଏହି ଜାତର ଓଲି ପିଆଜ ଦିନ ବଡ଼ ହେଲେ ଭଲ ବଢି ଅମଦାନି ଭଲ ଦିଏ । ଛୋଟ ଦିନ ଏବଂ ଶୀତ ଋତୁରେ ଏଗୁଡ଼ିକ ସେତେ ଭଲ ହୁଏ ନାହିଁ ।

**ପିଆଜ ଫସଲ ଲାଗି ଅନୁକୂଳ ଜଳବାୟୁ :—** ପିଆଜ ଶୀତ ଦିନିଆ ଫସଲ । ଚେର ଏବଂ ପତ୍ର ବଢିବା ଲାଗି ଥଣ୍ଡା ଜଳବାୟୁ ଏବଂ ପିଆଜ ଫୁଲିବା ଲାଗି ଅଧିକ ଉତ୍ତାପ ଏବଂ ଅଳ୍ପ ଆର୍ଦ୍ରତା ଦରକାର !

ପିଆଜ ଫୁଲିବା ଉପରେ ଦିନ ଅନ୍ଧାର ପ୍ରଭାବ ବହୁତ ଗଛ ବଢିବା ଲାଗି ଦିନ ୧୨ଘଣ୍ଟାରୁ କମ୍ ଏବଂ ପିଆଜ ଫୁଲିବା ଲାଗି ଦିନ ୧୨ଘଣ୍ଟାରୁ ଅଧିକ ହେବା ଦରକାର ।

---

Baily L. H 1887-
Preeliminary synopsis of onions and some of their allies.
26th Ann Rep. State Board of Agric Mich 94 98.

ଓଡ଼ିଶାରେ ଅଶ୍ୱିନ ମାସ ଆରମ୍ଭରେ ଦିନ ଘ୧୨ଣ୍ଟା ଥାଏ । ତାପରେ ଅସ୍ତେ ଅସ୍ତେ ପୁଷମାସ ପର୍ଯ୍ୟନ୍ତ କମି ମାଘମାସରୁ ବସନ୍ତ ପଞ୍ଚମୀ ପରେ ଦିନ ବଡ଼ ହୁଏ । ଯଥା :—

| ମାସ | ଦିନ | |
|---|---|---|
| ଅଶ୍ୱିନ | ଘ୧୨-୨୪ ମିନିଟରୁ | ଘ୧୧-୫୨ ମିନିଟ୍ |
| କାର୍ତ୍ତିକ | ଘ୧୧-୫୨ ,, | ଘ୧୧-୧୮ ,, |
| ମାର୍ଗଶୀର | ଘ୧୧-୧୮ ,, | ଘ୧୦-୫୩ ,, |
| ପୌଷ | ଘ୧୦-୫୩ ,, | ଘ୧୦-୪୮ ,, |
| ମାଘ | ଘ୧୦-୪୮ ,, | ଘ୧୧-୭ ,, |
| ଫାଲଗୁନ | ଘ୧୧-୭ ,, | ଘ୧୧-୩୭ ,, |
| ଚୈତ୍ର | ଘ୧୧-୩୭ ,, | ଘ୧୨-୧୧ ,, |

ସୁତରାଂ ନାଲି ପିଆଜ ଅଶ୍ୱିନ ମାସରୁ ମାର୍ଗଶିର ମାସଯାଏ ଏବଂ ଧଳା ପିଆଜ ପୁଷମାସରେ ଲଗାଇଲେ ବଢିବାକୁ ଯଥେଷ୍ଟ ସମୟ ମିଳିବ । ନାଲି ପିଆଜ ପୁଷ-ମାଘମାସରେ ଏବଂ ଧଳା ପିଆଜ ଚୈତ୍ରମାସରେ ଣ୍ଡୋଧିବ ଫଳିବ । ନାଲି ପିଆଜ ମାର୍ଗଶୀର ପରେ ଲଗାଇଲେ ଗଛ ବଢିବାକୁ ବେଶୀ ସମୟ ନ ଥାଏ । ଗଛରେ ଶୀଘ୍ର ଷଣ୍ଢା ଅସେ ଏବଂ ଅମଦାନି କମିଯାଏ । ଧଳା ପିଆଜ ପୁଷ ମାସ ମଧ୍ୟରେ ନ ଲଗାଇଲେ ଚୈତ୍ର ମାସ ପରେ ମାଟି ତାତି ଯାଏ ଏବଂ ପିଆଜ ଶୀଘ୍ର ଖୋଳା ନ ଗଲେ ପିଆଜ ସିଝି ଯାଇ ଦାଗ ଲାଗି ଯାଏ ।

---

Magruder. Roy and Allard H. A. 1937—
Bulb formation in some American and European varieties of onions as affected by length of day. Jour. Agr. Res: 54. 719

ଅଲେକ ପର ଉତ୍ତାପ ମଧ୍ୟ ପିଅଜ ଫୁଲିବାରେ ବାଧା ଘଟାଏ । ୫୦ ଡିଗ୍ରି-୬୦ଡିଗ୍ରି ଫାରେନ୍ ହାଇଟ୍ ଉତ୍ତାପରେ ପିଅଜ ଫୁଟେଲ୍ ନାହିଁ । କିନ୍ତୁ ୭୦ ଡିଗ୍ରି ୮୦ ଡିଗ୍ରି ଫାରେନହାଇଟ୍ ଉତ୍ତାପରେ ପିଅଜ ଫୁଲିଥାଏ ।

ପଟାଙ୍ଗି, ନନ୍ଦପୁର, ଉଦୟ ଗିର, ବାଲିଗୁଡା ପ୍ରଭୃତି ମାଳ ଅଞ୍ଚଳରେ ଏବଂ ସମୁଦ୍ର ପତନରୁ ୨.୫୦୦ ଫୁଟ ଉଚ୍ଚ ଜାଗାରେ ଉତ୍ତାପ ଏବଂ ଦିନର ପରିମାଣ ସେତେ କାର୍ଯ୍ୟ କରେ ନାହିଁ । ତେଣୁ ସେହି ଉଚ୍ଚ ସ୍ଥାନମାନଙ୍କରେ ଆଷାଢ ଶ୍ରାବଣ ମାସରେ ପିଅଜ ଫସଲ ଲଗାଯାଇପାରେ । ସୁତରାଂ ଏହି ଉଚ୍ଚ ସ୍ଥାନମାନଙ୍କରେ ତିନୋଟି ପିଅଜ ଫସଲ ହେବାର ସମ୍ଭାବନା ଅଛି ।

| ଫସଲ | ଲଗାଯିବା ସମୟ | ତୋଳାଯିବା ସମୟ |
|---|---|---|
| ନାଲିପିଅଜ ବା ଗୁଚ୍ଛ | ଆଷାଢ-ଶ୍ରାବଣ | କାର୍ତ୍ତିକ |
| ” | କାର୍ତ୍ତିକ | ମାଘ |
| ଓଲ୍ | ପୌଷ | ଚୈତ୍ର |

**ମୃତ୍ତିକା** :— ଦୋରସା ଏବଂ ବାଲିଆ ଦୋରସା, ଗ୍ରାମ ଛଳଜମି ଏବଂ ପଙ୍କୁଆ ମାଟି ପିଅଜ ଲାଗି ଉତ୍କୃଷ୍ଟ । ମଟାଳ ମାଟିରେ ଏହା ଭଲ ଉଠାଏ ନାହିଁ । ଖତଅଧିକ ଏବଂ ଦନ୍ଧ ମାଟି ( Mucksoil )ରେ ପିଅଜ ଅମଦାନି ଅଧିକ । ମାଟିର ଅମ୍ଳଭାଗ ( P H5·5-6·7 ) ବେଶୀ ହେଲେ ଏବଂ ଖଳା ମାଟିରେ ପିଅଜ ଭଲ ହୁଏ ନାହିଁ ।

ବଉଦ, ସୋନପୁର, ବଲାଙ୍ଗିର ପାଟଣା ଅଞ୍ଚଳରେ ଖାଲୁଆ ଜମିରେ ବର୍ଷଅନ୍ତ ପାଣି ବନ୍ଧ ଅସି ଜମା ହୋଇଯାଏ । ପୌଷମାସକୁ ସେହି ଜମିରୁ ପାଣି ଶୁଖାଇ ଜମିକୁ ଚାଷକରି ପିଅଜ ଲଗାନ୍ତି ।

**ମାଟି ତିଆରି :—** ମାଟି ଯେତେ ହାଲୁକା ରହିବ ପିଆଜ ସେତେ ଫଳିବ । ବର୍ଷାଦିନରେ ମକ୍କା ଗୁଛ ବଦଳରେ ବର ଗୁଞ୍ଜି ଚାଷ କରି ସବୁଜ ସାର ହିସାବରେ ମାଟିରେ ହିଉମସ୍ ଭାଗ ବଢ଼େ ଏବଂ ମାଟି ହାଲୁକା ରହେ । ନହେଲେ ମକ୍କା, ବାଜରା ଧାନ ଏବଂ କଖାରୁ ଫସଲ ଉଠାଇ ନେବାପରେ ପୁରୁଣା ଗୋବର ଖତ କିଂବା କମ୍ପୋଷ୍ଟ ଏକର ପ୍ରତି ୨୦-୩୦ ଗାଡ଼ି ଦେଇ ଜମି ଚାଷ କରିବ । ୫-୬ଇଞ୍ଚ ଗହୀରା ଯାଏ ମାଟି ଧୂଳି ପରି ଗୁଣ୍ଡ ହେବା ଦରକାର ।

ମାଟି ଗୁଣ୍ଡ ହୋଇ ନ ଥିବା ଢେଲା ଜମିରେ ପିଆଜ ଲଗାଇବା କଷ୍ଟକର ଓ ସମୟ ସାପେକ୍ଷ ।

**ପଟାଳି ତିଆରି :—** ନାଲି ଏବଂ ଧଳା ପିଆଜ ଲଗାଇବା ଲାଗି ୭-୮ ଫୁଟ ଚଉଡ଼ାରେ ପଟି କରିବ । ପ୍ରତି ଦୁଇ ପଟି ମଝିରେ ପାଣି ନାଳ ରଖିବ । ପ୍ରତି ପଟିରେ ୭-୮ ଫୁଟ ଅନ୍ତରରେ ଛୋଟ ପଦେଇ କିଆରୀ ତିଆରି କରିବ । ଏହି ପଟାଳିରେ ଖତ ପାଉଁଶ ଦେଇ ପିଆଜ ଲଗାଇବ ।

**ନାଲି ବା ଛାଟ ପିଆଜ ଲଗାଇବା :—** ଅତି ଛୋଟ କିଂବା ଅତି ବଡ଼ ପିଆଜ ଲଗାଇବ ନାହିଁ । ଅତି ଛୋଟ ପିଆଜରେ ଗଛ ବଢ଼ିବା ଲାଗି ଯଥେଷ୍ଟ ଖାଦ୍ୟ ନ ଥାଏ । ଅତି ବଡ଼ ପିଆଜ ଏକର ପ୍ରତି ବହୁତ ଦରକାର ପଡ଼େ ।

## *ଟେବୁଲ

| ପିଆଜର ଆକାର | କେତେ ବଡ଼ ? ( ଇଞ୍ଚମାପ ) | ଏକ ଏକର ପ୍ରତି ପିଆଜ କେତେ ବୁଶେଲ ଦରକାର ? | ମନ୍ତବ୍ୟ |
|---|---|---|---|
| ଛୋଟ | 1/4 ରୁ 1/2 | ୮.୧୪ = ୩ମହଣ | ୧ ବୁଶେଲ |
| ମଧ୍ୟମ | 1/2 ରୁ 3/4 | ୬୫.୦୮ = ୧୦" | = ୩୬ ପାଉଣ୍ଡ |
| ବଡ଼ | 3/4 ରୁ 1 | ୯୪.୦୮ = ୩୮ " | = ବାଲେଶ୍ୱରୀ ୧୬ ସେର |

୪ ସୁତରୁ ୬ ସୁତ ପିଆଜ ମଞ୍ଜି ଲଗାଇବା ଏକର ପ୍ରତି ୫ମହଣରୁ ୧୦ ମହଣ ପିଆଜ ଦରକାର ହୁଏ ।

**ଉଲ୍ପି ଆଜ ଲଗାଇବା :—** ଉଲ୍ପିଆଜ ଚଳା ଲଗାଯାଏ । ଏକର ପ୍ରତି ୪୦,୦୦୦ରୁ ୫୦,୦୦୦ ପର୍ଯ୍ୟନ୍ତ ଚଳା ଦରକାର ପଡ଼େ । ତେଣୁ ଏକରେ ଜମିଲାଗି ସେ୬ରରୁ ସେ୩ର ପର୍ଯ୍ୟନ୍ତ ମଞ୍ଜି ଦରକାର ପଡ଼େ ।

ମଞ୍ଜିକୁ କନାରେ ବାନ୍ଧି ଓଦା ବାଲିରେ ଦୁଇତିନ ଦିନ ପୋତି ପକାଇଲେ ଶୀଘ୍ର ଗଜା ବାହାରେ । ୩ଫୁଟରେ ୩ଫୁଟ ପଟାଳି କରିବ । ପଟାଳିରେ ପୁରୁଣା ଗୋବର ଖତ ଏବଂ ପାଉଁଶ ଗାଣ୍ଡୁଥିଏ ଦେଇ ମାଟି ହାଣି ମିଶାଇ ଦେବ । ଖତ ଗମିଗଲେ ପଟାଳିରେ ପାଣି ଭରିଦେଇ ଗଜାହୋଇ ଥିବା ମଞ୍ଜିକୁ ଛିଟି ବୁଣିବ । ଗଜା ଶୁଖି ନ ଯିବା ଲାଗି ପାଳ ଘୋଡ଼ାଇ ଦେବ ।

ଚାରା ସାତ-ଅଠ ସପ୍ତାହ ମଧ୍ୟରେ ଲଗାଇବା ଲାଗି ଠିକ୍ ହୋଇଯାଏ । ଚାରି-ଛଅ ଇଞ୍ଚ ଉଚ୍ଚ ଚାରା କ୍ଷେତରେ ଲଗାଇବା ଭଲ ।

*Onion production by Donald Comin 1946 Orange Judd publishing company, New york.

**ପିଆଜ ଲଗାଇବା :— (୧) କଲା ବା କୋଲା** ( SET )
ସ୍ତଖଣ୍ଡେ ଅନ୍ତରରେ ସିଅର କରିବ । ପ୍ରତି ସିଅରରେ ୯-୧୦ ଅଙ୍ଗୁଳ ଛଡ଼ାରେ ପିଅଜ କଲ ଲଗାଇବ । କଲ ମାଟିରେ ଘୋଟଡ଼ିଇ ହୋଇ ଯିବା ଲାଗି ଦୁଇ ଇଞ୍ଚ ଗହୀରତା ନାଲ କରିବ । କଲର ଚେର ପାଖ ତଳକୁ ଏବଂ ଗଣ୍ଠା ଉପରକୁ ରଖି ଲଗାଇବ ।

(୨) **ଗୁରା ବା ପଲ୍ହା** (Seedling) ଦୁଇହାତ ବର୍ଗରେ ପଟାଳି ତିଆରି କରିବ । ପୁରୁଣା ଖତ ଓ ପାର୍ଜିଶ ପଟାଳିରେ ବିଛେଇ ଦେଇ ସାମାନ୍ୟ ପରିମାଣରେ ପାଣି ଦେବ । ଫୁଟେ ଅନ୍ତରରେ ଧାଡ଼ି କାଟି ଚାରି ଛଅ ଅଙ୍ଗୁଳ ଛଡ଼ାରେ ପଲ୍ହା ଲଗାଇ ଦେବ । ପଲ୍ହା ଡେଙ୍ଗା ହୋଇଥିଲେ ଅଗରୁ ଇଞ୍ଚେ ଯାଏ କାଟି ଦେବ ।

(୩) **ମଞ୍ଜି** :— ଆମେରିକା ଯୁକ୍ତରାଷ୍ଟ୍ରରେ ଜଣେ ଜଣେ ଚାଷୀ ୮ରୁ୧୦ଏକର ପର୍ଯ୍ୟନ୍ତ ପିଅଜ ଚାଷ କରନ୍ତି । ସେମାନେ ପଲ୍ହା ନ ଉଠାଇ ମଞ୍ଜି କ୍ଷେତରେ ବୁଣି ଦିଅନ୍ତି । ଫୁଟେ ଜାଗାରେ ୧୦ରୁ ୨୦ଟା ପର୍ଯ୍ୟନ୍ତ ମଞ୍ଜି ବୁଣାଯାଏ । ଗଛ ଉଠି ୧୫-୨୦ଦିନ ହୋଇଗଲେ ଗଛକୁ ଗଛ ଦୁଇ ଅଙ୍ଗୁଳ ତଫାତ୍ ରଖି ବଳକା ଗୁଡ଼ିକ ଉପାଡ଼ି ଦିଅନ୍ତି । ଏକର ପ୍ରତି ସେ୧୦ରରୁ ୧୨ସେର ମଞ୍ଜି ଦରକାର ପଡେ ।

**ଖୁସା କୋଡ଼ା** :— ମୁଥା, ଦୂବଘାସ ଏବଂ କୋଦୁଅ ପ୍ରଭୃତି ପିଅଜ ଫସଲର ପ୍ରଧାନ ଶତ୍ରୁ । ଦଶ- ପନ୍ଦର ଦିନ ଅନ୍ତରରେ ପଟାଳି ଖୁସାଇ ମାଟି ଗୁଣ୍ଡ କରି ରଖୁଥିବ । ମାଟି ଯେତେ ଫାପସା ରହେ, ପିଅଜ ସେତେ ଫୁଲେ । ଗଛ ଦୁଇ ତିନି ପତ୍ର ବେଳେ, ପିଡ଼ିଅ ସାର ଦେବା ସମୟରେ ଏବଂ ଶଣ୍ଢା ବାହାରିବା ବେଳେ ପଟାଳି ଖୁସାଇବା ଭଲ ।

**ଖତ ପିଉଆ :—** ପିଅଳ ରେର ବେଶୀ ଗହ୍ୱରାକୁ ଯାଏ ନାହିଁ କିଂବା ବେଶୀ ଚଉଡ଼ାରେ ମାଡ଼େନାହିଁ । ଉପର ଛଅ ଇଞ୍ଚ ମାଟି ବତୁଆ ଏବଂ ହାଲୁକା ରହିବା ଦରକାର । ଏକର ପ୍ରତି ୧୦ରୁ ୩୦ ଗାଡ଼ି ଗୋବର ଖତ ବା କମ୍ପୋଷ୍ଟ ଦେଇ ଜମି ତିଆର କରିବ ।

<u>ଦୋରସା ଜମିରେ</u> ଏକର ପ୍ରତି ୫୦ ପାଉଣ୍ଡ ନାଇଟ୍ରୋଜେନ ଏବଂ ପୋଟାଶ ଓ ୧୦୦ପାଉଣ୍ଡ ଫସ୍ ଫରକ୍ ଅମ୍ଳ ଦେବ । ଏହି ଉପାଦାନ ଗୁଡ଼ିକ ଯୋଗାଇବା ଲାଗି ୩ ମହଣ ଅମୋନିୟମ ସଲଫେଟ୍, ଦୁଇ ଗାଡ଼ି ପାଉଁଶ ଏବଂ ୨ମହଣ ସୁପର ଫସ୍‌ଫେଟ ଦରକାର ।

<u>ମଶାଲିଆ ଧାନ ଜମି ପାଇଁ</u> ଏକର ପ୍ରତି ୭୫ ପାଉଣ୍ଡ ନାଇଟ୍ରୋଜେନ ଏବଂ ପୋଟାଶ ଓ ୧୫୦ ପାଉଣ୍ଡ ଫସଫରକ୍ ଅମ୍ଳ ଦେବ । ଏହି ଉପାଦାନ ଗୁଡ଼ିକ ଚାରିମହଣ ଅମୋନିୟମ ସଲ୍‌ଫେଟ୍, ତିନିଗାଡ଼ି ପାଉଁଶ ଏବଂ ତିନିମହଣ ସୁପର ଫସଫେଟ ଦେବ ।

<u>ବାଳିଆ ଏବଂ ବାଲିସରା ଓ ବନ ମାଟିଲାଗି</u> ଏକର ପ୍ରତି ୧୦୦ ପାଉଣ୍ଡ ନାଇଟ୍ରୋଜେନ୍, ପୋଟାଶ ଏବଂ ଫସଫରକ ଅମ୍ଳ ଦେବ । ଏହି ଉପାଦାନ ଗୁଡ଼ିକ ଛଅ ମହଣ ଅମୋନିୟମ୍ ସଲ୍‌ଫେଟ୍, ଚାରିଗାଡ଼ି ପାଉଁଶ ଏବଂ ଚାରିମହଣ ସୁପର୍ ଫସ୍‌ଫେଟ୍‌ରୁ ମିଳେ ।

<u>ପଟୁଆ</u> କଣ୍ଡିଆ ଓ ପଠା ମାଟିରେ ସାର ପିଉଆ ଦରକାର ପଡ଼େ ନାହିଁ ଅମୋନିୟମ୍ ସଲଫେଟ୍ ପୂରାପୂର ନ ଦେଇ ଅଧାଭାଗ ନାଇଟ୍ରୋ ଜେନ ପିଉଆ ରୂପରେ ଦେବ ।

* ପିଆଜ ଚୋପା ବହଳ ଏବଂ ଭଲ ରଙ୍ଗ ଲାଗି ତମ୍ବା ଧାତୁ ଦରକାର । ଏଠିରେ ତମ୍ବା ଧାତୁ ନ ଥିଲେ ପିଆଜ ଫିକା ଦେଖାଯାଏ ଏବଂ ବହୁତ ଦିନ ସାଇତି ରଖି ହୁଏ ନାହିଁ । ପିଆଜର ଭଲ ରଙ୍ଗ ଏବଂ ବେଶୀ ଦିନ ରହିବା ଲାଗି ଏକର ପ୍ରତି ଅଠେଇ ମହଣ ତୁତିଆ ଗୁଣ୍ଡ ଦିଆଯାଇଥାଏ ।

**ପାଣି ମଡାଇବା:—** ପିଆଜ ପତ୍ର, ଶଣ୍ଢା, ପିଆଜ କନ୍ଦାରେ ବହୁତ ଜଳୀୟ ଅଂଶ ଥାଏ । ତେଣୁ ଭଲ ଫସଲ ଲାଗି ପାଣି ନିତାନ୍ତ ଆବଶ୍ୟକ । ମାଟି ଅନୁସାରେ ପ୍ରତି ୭-୧୦ ଦିନ ଅନ୍ତରରେ ପାଣି ମଡ଼ାଇବ । ମାଟି ଫାଟିଗଲେ ଖୁସାଇ ଗୁଣ୍ଡ କରି ଦେଲେ ଜମି ବତର ରହେ । ଶୀଘ୍ର ପାଣି ଦେବାକୁ ପଡ଼େ ନାହିଁ । ଫସଲ ଉଠାଇବାକୁ ୮-୧୦ ଥର ପାଣି ମଡ଼ାଇବା ଦରକାର । ପିଆଜ ମୂଳ ସନ୍ତସନ୍ତିଆ କିମ୍ବା ଖୁବ୍ ଶୁଖିଲା ରଖିବ ନାହିଁ ।

**ଶଣ୍ଢା :—** କନ୍ଦ ଲଗାଯିବାର ୮-୯ ସପ୍ତାହ ପରେ ଗଛରେ ଶଣ୍ଢା ଆସେ । ଶଣ୍ଢା କଅଁଳ ଥିବାବେଳେ ଭାଙ୍ଗିନେବ । ଗଛ ପ୍ରତି ଦୁଇଟା ଶଣ୍ଢା ଭାଙ୍ଗିନେବା ପରେ ଗଛକୁ ଗୋଡ଼ରେ ଭାଙ୍ଗି ଶୁଆଇ ଦେବ ।

**ଖୋଳିବା:—** ଶୀଘ୍ର ବିକ୍ରୀ ଲାଗି ଗଛ ନ ମରିବା ପୂର୍ବରୁ ଖୋଳିବ । କିନ୍ତୁ ସାଇତି ରଖି ବିଳମ୍ବରେ ବିକ୍ରୀ କରିବା ଲାଗି ଗଛ ମରିଯାଇ ପିଆଜର ଉପର ଚୋପା ଶୁଖି ବାହାର ଯିବା ପରେ ଖୋଳିବ । ଖୋଳିବାର ୧୦-୧୫ ଦିନ ଆଗରୁ ପିଆଜ ଗଛକୁ ମଇ ଦେଇ ବା ଗୋଡ଼ରେ ମାଡ଼ି ଭାଙ୍ଗି ଦେଇ ଶୁଆଇ ପକାଯାଏ ।

---

*Knott J. E. 1938 — The effect of certain mineral elements on the colour and thickness of Onion scales. N. Y. (Cornell) Sta, Bull. 561 1938

ଘ୍ଷଟ ପିଆଜ ପୌଷରୁ ଚୈତ୍ର ମାସ ଯାଏ ଏବଂ ଓଲ ପିଆଜ ଚୈତ୍ର-ବୈଶାଖ ଅରମ୍ଭରେ ଖୋଲାଯାଏ । କିନ୍ତୁ ବର୍ଷାପାଗ ଦେଖିଲେ ଫସଲ ଶୀଘ୍ର ଖୋଲିନେବା ଦରକାର । ବର୍ଷା ଖାଇଲେ ପିଆଜ ସଡ଼ିଯାଏ ।

**ଆମଦାନି :—** ଘ୍ଷଟ ପିଆଜ ଅଗରୁଆ ଖୋଲାଗଲେ ୩୦ ରୁ ୭୦ ମହଣ, ଗଛ ଶୁଖି ଠିକ୍ ସମୟରେ ଖୋଲା ଗଲେ ୭୦-୧୦୦ ମହଣ ପର୍ଯ୍ୟନ୍ତ ଏକର ପ୍ରତି ଅମଦାନି ମିଳେ । ଓଲ ପିଆଜ ପ୍ରତି ୧୦୦ ରୁ ୧୫୦ ମହଣ ପର୍ଯ୍ୟନ୍ତ ଅମଦାନି ହୁଏ ।

## ବାହନ ଲାଗି ପିଆଜ ଓ ଓଲ ମଞ୍ଜି ଉତ୍ପାଦନ
## ( Production of onion sets and seeds )

**ବାହନ ପିଆଜ ଧରା—( Growing of dry onion sets )**

ଘ୍ଷଟ ପିଆଜ ଫାଲ୍‌ଗୁନ-ଚୈତ୍ର ମାସରେ ଖୋଲାଯାଏ ଏବଂ ଦାହେରା ପରେ ଲଗାଯାଏ । ତେଣୁ ବାହନ ଲାଗି ପିଆଜକୁ ଛଅ ମାସ ସାଇତି ରଖିବାକୁ ପଡ଼େ । ମାତ୍ର ଏତେ ଦିନ ପଡ଼େ ଯେ ପିଆଜ ସଡ଼ି ପଚିଯାଏ । ତେଣୁ ବର୍ଷାଋତୁରେ ବାହାନ ପିଆଜକୁ ଲଗାଇବାକୁ ପଡ଼େ । ସେହି ପିଆଜକୁ "କାନୁଆ ପିଆଜ" କହନ୍ତି ।

ଅଷାଢ ଶ୍ରାବଣ ମାସରେ ଢିପ, ସମତଳ ଓ ଦୋରସା ମାଟି ଜମିରେ ପିଆଜ ଲଗାଯାଏ । ପଟାଳିରୁ ପାଣି ସହଜରେ ନିଗିଡ଼ି ଯିବା ଲାଗି ବେଦ ପର ତିଆରି କରିବାକୁ ପଡ଼େ । ପଚେଷ୍ଟ ଖତ ଏବଂ ପାଉଁଶ ଦେବାକୁ ପଡ଼େ । ମଞ୍ଜି ପିଆଜ ସରୁ ସରୁ ହେବା ଦରକାର । ତେଣୁ ଧାଡ଼ିକୁ ଧାଡ଼ି ଛଅ ଅଙ୍ଗୁଳି ଏବଂ ଗଛକୁ ଗଛ ତିନି ଅଙ୍ଗୁଳି ଛଡାରେ ପିଆଜ ପୋତାଯାଏ । କ୍ଷେତରୁ ମୁଥା,ଦୁବ, ବୋଦୁଅ ଏବଂ ପୋକସୁଙ୍ଗା ବାଛି ଦେବାକୁ ପଡ଼େ ।

ଦୁଇମାସ ପରେ ଦଶହରା ବେଳକୁ ପିଆଜ ଖୋଳା ଯାଏ । ତାଦୁଆ ପିଆଜ ଶୀତ ଦିନିଆ ଫସଲ ଲାଗି ବାହନରୂପେ ବ୍ୟବହାର ହୁଏ ।

**ଓଲ ମଞ୍ଜି ଧରିବା :— ବାହନ ଓଲ** ( Mother Bulb )

ଓଲ ଛନ୍ଦା ଲଗାଯାଇ ମଞ୍ଜି ଧରାଯାଏ । ଛନ୍ଦା ଗୋଟାଏ ପ୍ରକାରର ହେବା ଦରକାର । ଧଳା ଏବଂ ଲାଲ ମିଶା ମିଶି ନହୋଇ ଖାଣ୍ଟି ଧଳା, ଖାଣ୍ଟି ଲାଲ କିଂବା ଖାଣ୍ଟି ହଳଦିଆ ହେବା ଦରକାର ଖୋଳିବା ବେଳେ ବାହନ ଲାଗି ଏକବଛା ଓଲ ରଖିବ । ବାହନ ଲାଗି ଓଲ ଯେତେ ଥଣ୍ଡାରେ ରହିବ, ଗଛରେ ସେତେ ଭଲ ଭାବରେ ଫୁଲ ଆସିବ । ବାହନ ଓଲ ୪୦ରୁ ୫୦ଡ଼ିଗ୍ରି ଫାରେନ ହାଇଟ୍ ଉତ୍ତାପରେ ରହିବା ଦରକାର ।

ମଞ୍ଜି ଲାଗି ଓଲ ବଡ ହେବା ଦରକାର । ଓଲ ଯେତେ ବଡହେବ ମଞ୍ଜି ସେତେ ଅଧିକ ମିଳିବ ।

ଓଲର ଆକାର ଉପରେ ମଞ୍ଜି ଅମଦାନି ନିର୍ଭର କରେ ।

**ଓଲ ଆକାର ଉପରେ ମଞ୍ଜି ଉତ୍ପନ୍ନ ପରିମାଣ**

| ଆକାର | ଗଛ ପ୍ରତି ମଞ୍ଜି ଅମଦାନି |
|---|---|
| ବଡ଼ ( 3ଇଞ୍ଚରୁ ଉର୍ଦ୍ଧ୍ୱ ) | $1\frac{1}{4}$ ଆଉନ୍ସ |
| ମଧ୍ୟକୁଳ ( $2\frac{1}{4}$ ଇଞ୍ଚରୁ 3ଇଞ୍ଚ ) | $\frac{3}{4}$ " |
| ଛୋଟ ( 2ଇଞ୍ଚରୁ କମ୍ ) | $\frac{1}{2}$ " |

ମଞ୍ଜି ଲାଗି ଓଲ ୨ଇଞ୍ଚରୁ ଅଧିକ ଆକାରର ହେବା ଦରକାର । ଧାଡ଼ିକୁ ଧାଡ଼ି ହାତେ ଏବଂ ଓଲକୁ ଓଲ ବୁଢାଗ୍ରେ ଛଡ଼ାରେ ଲଗାଇବ । ୩ଇଞ୍ଚ ଗଭୀରତାରେ ଓଲକୁ ଲଗାଇବ । ଏକର

ପ୍ରତି ୭୦-୯୦ ମହଣ ଓଲ ଦରକାର । ବଡ଼ ଓଲକୁ ଦୁଇଫାଡ଼ା କରି ଲଗାଇଲେ ମଞ୍ଜି ଅଧିକ ମିଳେ !

ଓଲ ଲାଗି ଯେପରି ଚାଷ, ଖତ ପିଆଁ ଏବଂ ପାଣି ଦରକାର ମଞ୍ଜି ଲାଗି ମଧ୍ୟ ସେହିପରି ଦରକାର ।

ଗୋଟିଏ ଗୁଡ଼ାରୁ ୧।୨ ଟା ଶେଣ୍ଢା ବାହାରି ଥାଏ । ପ୍ରତି ଶେଣ୍ଢାରେ ୫୦-୧,୦୦୦ଟି ଫୁଲ ଥାଏ । ଗର୍ଭପୀଠ ପ୍ରସ୍ତୁତ ହେବା ପୂର୍ବରୁ ପରାଗ ରେଣୁ ବାହାରି ଯାଏ । ତେଣୁ ଅତ୍ମ ପରାଗ ସଙ୍ଗମ ସମ୍ଭବ ହୋଇପାରେ ନାହିଁ । କୀଟ ପତଙ୍ଗ ଦ୍ୱାରା ପର ପରାଗ ସଙ୍ଗମ ସମ୍ଭବ ହୁଏ । ତେଣୁ ଦୁଇ ଜାତର ଓଲ ୨୨୦ ଗଜ ମଧ୍ୟରେ ମଞ୍ଜି ଲାଗି ଲଗାଯିବା ଉଚିତ ନୁହେଁ । ପାଖା ପାଖି ଲଗା ଗଲେ ପର ପରାଗ ସଙ୍ଗମ ହୋଇ ଦୋମିଶା ହୋଇ ଯାଏ ।

ଗୋଟିଏ ଫୁଲରେ ୧।୬ଟା ମଞ୍ଜି ଥାଏ । ମଞ୍ଜି କାଳିଆ । ମଞ୍ଜିକୁ ଅଙ୍ଗୁଠିରେ ରଖି ଚିପି ଦେଲେ ଯଦି ଦାବି ହୋଇ ନ ଯାଏ ତେବେ ମଞ୍ଜି ପାଚିଲା ହେଲା ଜାଣିବ । ଶେଣ୍ଢାରୁ ବୃନ୍ତଗୁଡ଼ିକ ରଖି ମଞ୍ଜି-ଥୋପା କାଟି ବଡ଼ା-ବଡ଼ା ବାନ୍ଧ ଦେବ । ବିଡ଼ାକୁ ଅଗାରେ, ସପ ବା ମସିଣାରେ ଅଥବା ଖଳାକୁ ଲିପି ଶୁଖାଇବ । ଥୋପି ଶୁଖିଗଲେ ମଞ୍ଜି ଗୁଡ଼ିକ ବାହାରି ପଡ଼େ । ମଞ୍ଜିକୁ ପାଛୁଡ଼ି ଶୁଖାଇ ରଖିବ; ଓଦା ରହିଲେ ମଞ୍ଜି ଗଜା ହୁଏ ନାହିଁ ।

**ମଞ୍ଜି ଆମଦାନି** :— ଏକର ପ୍ରତି ୫ରୁ ୧୦ ମହଣ ମଞ୍ଜି ଅମଦାନି ହୁଏ । ମହଣେ ଓଲ ଲଗାଇଲେ ସେ୧୨ରରୁ ସେ୫୨ର ମଞ୍ଜି ମିଳେ ।

# ପିଆଜ ଫସଲର ଶତ୍ରୁ ଓ ରୋଗ

## କୀଟପତଙ୍ଗ ଶତ୍ରୁ

( ୧ ) ଥ୍ରିପ୍ ( Thrip, thrips tabaci ) ଥ୍ରିପ ଜଳୁଣି ପରି । ପିଆଜ ପତ୍ରରେ ଧଳା ଦାଗ ଦେଖାଗଲେ ଥ୍ରିପ ଲାଗିବାର ଜାଣିବ । ଓଲ୍ ଫସଲରେ ଚୈତ୍ର ମାସ ଅଡ଼କୁ ଏହୁ କୀଟ ଦେଖାଯାଏ ।ପିଆଜ ପତ୍ର ମୂଳରୁ ଝଗ ଅଡ଼କୁ ଏହୁ କୀଟ ଖାଏ । ପତ୍ରର ରସ ଶୋଷି ନେଉଥିବାରୁ ପତ୍ର ଶୋଇଯାଅ ପଡ଼ି ମରିଯାଏ ।

**ପ୍ରତିକାର** :— ଭଙ୍ଗ ପାଣି ପିଚକାରି ଦେଲେ ଥ୍ରିପ ନଷ୍ଟ ହୋଇଯାଏ । ୫୦ ଗାଲନ ପାଣିରେ ପାଣ୍ଡିଏ ନିକୋଟିନ୍ ସଲଫେଟ୍ ଦ୍ରବଣ ମିଶାଇ ପିଚକାରି ଦେଲେ ଥ୍ରିପ୍ ମରିଯାଏ ।

ଅମେରିକାର ଯୁକ୍ତରାଷ୍ଟ୍ରରେ ନାପଥାଲିନ-ଚୂନ ଗୁଣ୍ଡ ( Napthalene-lime dust. ) ବ୍ୟବହାର କରାଯାଏ । ଏକର ପ୍ରତି ୨୦୦ପାଉଣ୍ଡ ଗୁଣ୍ଡ ବାଣ୍ଟି ଦିଆଯାଏ । ୪୦ପାଉଣ୍ଡ ନାପଥାଲିନ୍ ଓ ୭୦ ପାଉଣ୍ଡ ସିଥରୁନ ମିଶାଇ ସାମାନ୍ୟ ପାଣି ଛୁଞ୍ଚି ଦିଆଯାଏ । ଗୋଟିଏ ଡ୍ରମରେ ଏହୁ ଦୁଇଟି ଜିନିଷ ଫେଣ୍ଟି ୨୪ ଘଣ୍ଟା ପର୍ଯ୍ୟନ୍ତ ମୁନ୍ଦି ଦିଆଯାଏ ।

ଡ,ଡ଼,ଟି ପିଚକାରି ଦେଲେ ଥ୍ରିପ୍ ମଧ୍ୟ ମରିଯାଏ ।

(୨) ଅଂଶେର ( Onion maggot Hylemia antiqua ) ଓଲ୍ ଫଲ୍‌ହାରେ ଅଂଶେର ଲାଗି ବହୁତ କ୍ଷତି ଅଟଣେ । ଅମେରିକାର ଯୁକ୍ତ ରାଷ୍ଟ୍ରରେ ଓଲ୍ ମଞ୍ଜିରେ ରସ କର୍ପୂର ( Calomeb ) ଗୋଟେଇ ବୁଣାନ୍ତି ।

( ୩ ) **ରୋଗ**:— ସୁଟ୍ ( Onion smut ) ଏହୁ ରୋଗ ଏକପ୍ରକାର ଫିମ୍ପି ( Urocystis cepubae ) ହେତୁ ଘଟେ । ସାଧାରଣତଃ

ଓଲ୍ ପିଅଜ ଫୁଲୁଥିବାକୁ ଏହି ରୋଗ ନଷ୍ଟ କରେ । ପୌଷ-ମାଘ ମାସରେ ମାଟିର ଉତ୍ତାପ ୭୨ ଫାରେନ୍ ହାଇଟ୍‌ରୁ ଊଣା ପଡ଼ି ଗଲେ ଫଲ୍‌ହା ଅଗ ଫୁଟିବାକୁ ଆରମ୍ଭ କରେ । ଯେତେ ବାଡ଼ିରେ ମଧ୍ୟ ଓଲ୍ ପିଅଜ ଗଛର ପତ୍ର ଗୁଡ଼ିକ ଶୁଖିଯାଇ ପଡ଼ିଯାଏ । ବାମଣ୍ଡା ଓ ଦେଓଗଡ଼ ଅଞ୍ଚଳରେ ଏହି ରୋଗକୁ "ମଇଁଷିଆ ପଡ଼ିବା" ରୋଗ କୁହାଯାଏ । ସ୍ପଟୀ ଧାଡ଼ିମଣ୍ଡି ଗୁଣ୍ଡକର ପଟାଳରେ ବୁଣି ପାଣି ମଡ଼ାଇଲେ ଝାଉଁଳିଆ ଗ୍ଲୁଡ଼ ଯାଏ । ଶହେ ଗାଲନ୍ ପାଣିରେ ଏକ ଗାଲନ "ଫର୍ମାଲଡ଼ ହାଇଡ୍" ( Formaldehyde ) ମିଶାଇ ଦେଲେ ଏହି ରୋଗ ଊଣା ପଡ଼େ ।

**ପିଆଜ ସାଇତିବା:**—ପିଅଜ ଖୋଲ ସାର ଗ୍ଲରେ ଶୁଖାଇବ । ଦବ ପାକଳ ଓ ରୋଗଣା ପିଅଜ ବାଛି ପକାଇବ । ବସ୍ତାରେ ବା ବାଉଁଶ ଗୁଞ୍ଚାରେ ପୂରାଇ ଡେର କରି ରଖିବ । ଜେଠ ଅଧିକ ଉତ୍ତାପ ଏବଂ ଅଷାଢ ମାସରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ଅଧିକ ଉତ୍ତାପ ଓ ବାୟୁର ଅଧିକ ଆର୍ଦ୍ରତା ହେତୁ ପିଅଜ ବିଶେଷ ଭାବରେ ପଚିଯାଏ । ଅଧିକ ଉତ୍ତାପ ହେତୁ ପିଅଜରୁ ଗଜା ବାହାରି ଯାଏ ଏବଂ ବାୟୁର ଆର୍ଦ୍ରତା ଅଧିକ ହେତୁ ଚେର ବାହାରି ପଡ଼େ । ବାୟୁର ଆର୍ଦ୍ରତା କମେଇବା ଲାଗି ଭଣ୍ଡାର ଘରେ ( Store house ) କାଲସିୟମ କ୍ଲୋରାଇଡ୍ Calcium chloride ) ରଖିବ । ବାୟୁର ଆର୍ଦ୍ରତା ୭୫ରୁ ଅଧିକ ଯିବା ଉଚିତ ନୁହେଁ କିମ୍ବା ଉତ୍ତାପ ୫୦ ଡିଗ୍ରି ଫାରେନ୍ ହାଇଟରୁ ଅଧିକ ହେବନାହିଁ ।

**ଖାଦ୍ୟ ହିସାବରେ ପିଆଜ:**— ଅଧସେର ବଜନ ପ୍ରଭାବ ପକାଇବା ନେଲେ ତହିଁରୁ ଶରୀର ଧାରଣ ଓ ପୁଷ୍ଟି ଲାଗି କ୍ଷ ଉପାଦାନ ମିଳେ ତାହା ଦିଆଗଲା ।

| ଫଳ ପରିବା | ଉତ୍ତାପ କାଲୋରି | ପ୍ରୋଟିନ୍ ଗ୍ରାମ | ସ୍ନେହ ପଦାର୍ଥ (ଗ୍ରାମ) | ଶ୍ୱେତସାର (ଗ୍ରାମ) | ଚୂନ ମିଲି ଗ୍ରାମ | ଫସ୍‌ଫରସ୍ | ଲୁହା | ଭିଟାମିନ୍ A. I. U. | ଥିଆମିନ୍ | ଭିଟାମିନ୍ ସି (ମିଗ୍ରା) |
|---|---|---|---|---|---|---|---|---|---|---|
| ବିନ୍‌ମଞ୍ଜି | ୨୫୯୦ | ୨୦୦ | ୭ | ୨୮୨ | ୬୭୨ | ୨୧୬୦ | ୪୬.୭ | — | — | |
| ବିନ୍ ଛୁଇଁ | ୮୦ | ୪ | ୧ | ୧୫ | ୧୯୦ | ୧୦୨ | ୩.୩ | ୪୫୪୦ | ୨୫ | |
| ବିଟ୍ | ୨୪୦ | ୭ | ୧ | ୫୨ | ୭୯ | ୧୨୭ | ୩୦ | ୩୦୦ | ୨୦ | |
| ଗାଜର | ୧୭୫ | ୫ | ୧ | ୩୭ | ୨୫୬ | ୧୫୦ | ୩.୨ | ୨୮୩୫୦ | ୩୦ | |
| ପିଆଜ | ୨୧୦ | ୭ | ୧ | ୪୪ | ୧୩୬ | ୧୮୬ | ୨.୧ | — | ୪୫ | |
| ମଟର | ୨୧୦ | ୧୪ | ୧ | ୩୬ | ୪୫ | ୨୫୦ | ୩.୨ | ୧୭୮୦ | ୫୦ | |
| ବିଲାତି ଆଳୁ | ୩୨୫ | ୮ | ୧ | ୭୩ | ୫୦ | ୧୮୬ | ୨.୮ | ୧୫୦ | ୪୦ | |
| ପାଳଙ୍ଗ | ୯୦ | ୫ | ୧ | ୧୨ | — | ୨୦୫ | ୧୧.୪ | ୨୭୫୨୦ | ୨୬୦ | |
| ବିଲାତି ବାଇଗଣ | ୧୦୦ | ୨ | ୧ | ୧୮ | ୪୯ | ୧୨୦ | ୨.୭ | ୫୭୮୦ | ୧୧୦ | |

ପିଆଜ ଭଲ ପାଗ ଯୋଗ ପାଇଲେ ତହିଁରୁ ଏକ ପ୍ରକାର ରାଗ ବାହାରେ । ଏହିରାଗ ଗନ୍ଧକ ଯୁକ୍ତ ଏକପ୍ରକାର ତେଲ ହେତୁ ଘଟେ । ଏହି ତେଲର ପରିମାଣ ଅନୁସାରେ ପିଅଜ ରାଗ, ଅରାଗ ନିର୍ଭର କରେ । ଏହି ତେଲ ଆଖିରେ ପଡ଼ିଲେ ଲୁହ ଆସେ । ଲାଲ ପିଅଜରେ ଏହିତେଲ ଅନୁପାତ ଅଧିକ ଏବଂ ଧଳ ପିଅଜରେ ଅଳ୍ପ । ଏହି ତେଲ ଉଦ୍‌ବାୟୀ ( Volatile ) ତେଣୁ ପିଅଜ ରନ୍ଧା ଗଲେ ଏହା ନଷ୍ଟ ହୋଇଯାଏ । ଏହି ତେଲ ହେତୁ ପିଅଜ କଞ୍ଚା ଖାଇଲେ ପାକସ୍ଥଳୀ ଉତ୍ତେଜିତ ହୋଇ ଘା' ହୋଇପିବାର ସମ୍ଭାବନା କିନ୍ତୁ ରନ୍ଧା ପିଅଜରେ ଏ ଖରାପ ଗୁଣ ରହେ ନାହିଁ ।

ପିଅଜରେ ଶ୍ୱେତସାର ନାହିଁ କିନ୍ତୁ ସେଲୁଲୋଜ୍ ପରିମାଣ ଯଥେଷ୍ଟ ତେଣୁ ଏହା କୋଷ୍ଠ କାଠିନ୍ୟ କରେ । ଏଥିରେ ଜଳଭାଗ ଅଧିକ । ତେଣୁ ରୋଗରୁ ଉଠିବା ପରେ ଲୋକଙ୍କୁ ଖାଇବାକୁ ଦିଆଯାଏ ।

ଚୂନ୍ ଏବଂ ଅଳ୍ପ ପରିମାଣ ପିଅଜ ଦେହ ଗରମ ରଖେ । ଫସ୍‌ଫରସ୍ ପ୍ରଚୁର ପରିମାଣରେ ମିଳେ କିନ୍ତୁ ଲୁହା ଭାଗ ଅତି ସାମାନ୍ୟ । ଭିଟାମିନ୍ "ଏ" ନାହିଁ କିନ୍ତୁ 'ବି' 'ସି' ଏବଂ 'ଜି' ଭିଟାମିନ୍ ଅଛି ।

ପିଅଜ ତରକାରୀର ବାସନା ଓ ସ୍ୱାଦୁ ବଢାଏ । ଏଥିଲାଗି ଡ଼ାଲି, ତରକାରି ମାଂସ ଓ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀରେ ପିଅଜ ବ୍ୟବହାର ଏବଂ ଆଦର ଅଧିକ ।

"In fact, there is many a spot on the menu where adding onion makes a good dish a better dish".

## ପିଆଜ ଚାଷରେ ଏକର ପ୍ରତି ଆୟ ବ୍ୟୟ (ଛୋଟପିଅଜ)

| କାର୍ଯ୍ୟର ବିବରଣୀ | ବଳଦ ମୂଲ | ପୁ: | ସ୍ତ୍ରୀ | ବା: | ଅନ୍ୟାନ୍ୟ |
|---|---|---|---|---|---|
| **ମୂଲିଆ:**— (କ) କ୍ରମିବ୍ରତ- ଦ୍ଵାର ଓଡ଼ ବ୍ରତ । | ୮ | | | | |
| (ଖ) ପଟାଳି ତିଆର | | ୧୬ | | ୪ | |
| (ଗ) ପିଅଜ ଲଗାଇବା | | ୮ | | ୪ | |
| ଖତ, ପାଉଁଶ ବିଛାଇବା | | | ୬ | | |
| (ଘ) ପିଅଜ ଖୁସାଇବା, ଘାସ ବାଛିବା, ଖତ ପିଡ଼ିଆ ଦେବା ୪ ଥର ଖୁସାକୋଡ଼ା ପ୍ରତିଥର ୧୦ ଜଣ | | ୨୦ | ୧୦ | ୧୦ | |
| (ଙ) ପାଣି ମଡ଼ାଇବା ଅଠେଟା ପାଣି ଦରକାର ପ୍ରତି ଥର ୬ ଜଣ ପୁରୁଷ | | ୪୮ | ୮ | | |
| (ଚ) ଶଣ୍ଢା ଭାଙ୍ଗିବା | | | | | |
| (ଛ) ଖୋଳିବା | | | | | |
| କ- ଖୋଳିବା | | ୮ | | | |
| ଖ- ଚେର ଓ ପତ୍ର କାଟିବା | | | ୩୦ | | |
| ଗ- ଶୁଖାଇବା ଓ ସାଇତା | | ୮ | | | |
| | ୮ | ୧୦୮ | ୫୪ | ୧୮ | ୯୮୦ ମୂଲ |
| **ମଞ୍ଜି:**— ୪ ମହଣ (ଛଟ) | | | | | |
| **ଖତପିଡ଼ିଆ:**— ଗୋବର ଖତ ୨୦ ଗାଡ଼ି | ... | ... | ... | ... | ଟ ୩୦୲ |
| ପାଉଁଶ ୨ " | ... | ... | ... | ... | ଟ ୧୦୲ |
| ପିଡ଼ିଆ ୮ ମହଣ | .. | ... | ... | ... | ଟ ୪୦୲ |
| ଅମୋନିୟମ ସଲଫେଟ୍ ୨ ମ: | ... | ... | ... | ... | ଟ ୪୦୲ |
| ସୁପର ଫସଫେଟ୍ ୨ ମହଣ | ... | ... | ... | ... | ଟ ୪୦୲ |
| | | | | | ଟ୧୬୦୲ |
| **ଔଷଧ** ... | ... | ... | ... | ... | ଟ ୧୦୲ |
| **ଜମିକର** | ... | ... | ... | ... | ଟ ୫୲ |

| | |
|---|---|
| ମଜୁରି - - - - - - - - | ଟ୧୪୦/ |
| ଖତ, ସାର ପ୍ରଭୃଅ - - - - - | ଟ୧୪୦/ |
| ପୋକମାରିବା ଔଷଧ - - - - - | ଟ୧୦/ |
| ଜମି ଖଜଣା - - - - - - | ଟ୫/ |
| ଟଙ୍କା କରଜ ଅଣିଥିଲେ ଟ୨୦୦/ର ଛଅମାସକୁ ସୁଧ- - - - | ଟ୨୦/ |
| ବାକି ମଜୁରି - - - - - - | ଟ୧୫/ |
| ମୋଟ | ଟ୩୩୦/ |

ଏକର ପ୍ରତି ହାର୍ ହାରି ଅମଦାନି ୪୫ ମହଣ

| | |
|---|---|
| ମହଣ ପ୍ରତି ଟ୧୦/ ଦରରେ ମୂଲ୍ୟ - - | ଟ୪୫୦/ |
| ଖର୍ଚ୍ଚ | ୩୩୦/ |
| ଲାଭ | ଟ୧୨୦/ |

# ରସୁଣ

## GARLIC

### ALLIUM SATIVUM
### N. O. LILIACEAE

ରସୁଣ ଏବଂ ପିଆଜ ଗୋଟିଏ ବର୍ଗର ଉଦ୍ଭିଦ । ପିଆଜରେ କୋଲ ଥାଇ ପାରେ ଯଥା- ଗ୍ଲଚ ପିଆଜ କିଂବା ନ ଥାଇପାରେ ଯଥା-ଓଲ ପିଆଜ । କିନ୍ତୁ ରସୁଣରେ କୋଲଥାଏ । ପ୍ରତି ରସୁଣରେ ୫ଟିରୁ ୨୫ଟି ପର୍ଯ୍ୟନ୍ତ ଛୋଟ ରସୁଣ ବା କୋଲ ଥାଏ ।

ଏହି କୋଷକୁ "କ୍ଲୋଭ Clove" କୁହାଯାଏ । କୋଷଗୁଡ଼ିକ କୋଟିଏ ଧଳା ପର୍ଦ୍ଦା ଭିତରେ ଘୋଡ଼ାଇ ହୋଇ ରହିଥାଏ । ଏହି ଧଳା ପର୍ଦ୍ଦା ସ୍ତର ସ୍ତର ହୋଇଥାଏ । ତେଣୁ ରସୁଣ ଯେତେ ଶୁଖିଥାଏ ଏହି ସ୍ତର ଗୁଡ଼ିକ ସେତେ ବାହାରି ଯାଉଥାଏ ।

ପିଆଜ ଆଗ ଲଗାଯାଏ । ରସୁଣ ପଛରେ ଲଗାଯାଏ । ପିଆଜ ଅପେକ୍ଷା ରସୁଣ ଅଧିକା ମାସେ କ୍ଷେତରେ ରହେ । ରସୁଣ ପତ୍ର ଶୁଖିଗଲା ପରେ ଖୋଳା ହେବ, ସେତେବେଳେ ବେଶୀ ଦିନ ରହିପାରିବ ।

**ମାଟି :—** ଦୋରସା ଏବଂ ଖତୁଆ ବଗିଚା ମାଟି ରସୁଣ ଲାଗି ଉପଯୁକ୍ତ । ବାଲିଆ ମାଟି ଏବଂ ମଟାଳ ମାଟିରେ ରସୁଣ ଭଲ ଫଳେ ନାହିଁ । ପଟୁପଡ଼ା ମାଟିରେ ଏହି ଫସଲ ଭଲ ହୁଏ ।

**ଜମି ତିଆରି :—** ମାଟି ତିନି ଚାରି ଓଡ଼ ଚାଷ କରି ମଇ ଦେଇ ଗୁଣ୍ଡ କରିଦେବ । ଟେକା ଜମିରେ ମଟାଳ ତିଆରି କରିବା ଏବଂ ଲଗାଇବା କଷ୍ଟପଡ଼େ ।

ସାତ ଆଠ ଫୁଟ ଚଉଡ଼ାରେ ପଟି ତିଆରି କରିବ । ପ୍ରତି ଦୁଇ ପଟି ମଝିରେ ଫୁଟେ ଚଉଡ଼ାରେ ପାଣି ମଡ଼ାଇବା ଲାଗି ନାଳ ଖୋଳିବ । ପ୍ରତି ପଟିକୁ ୫ ଫୁଟ ଲମ୍ବରେ ମଟାଳ ଭାଙ୍ଗିଦେବ । ମଟାଳରୁ ପାଣି ଚାଲି ନ ଯିବା ଲାଗି ଚାରିକଡ଼ରେ ହିଡ଼ା ଟେକିଦେବ ।

**ବିହନ:—** ଟେକା ରସୁଣକୁ ଗୋଡ଼ରେ ଦଳିଦେଇ କୋଷଗୁଡ଼ିକ ଅଲଗା କରିଦେବ । କୁଲାରେ ପାଛୁଡ଼ି ଦେଲେ ଚୋପା ଗୁଡ଼ିକ ବାହାରି ଯାଏ । ମୋଟା କୋଷ ଗୁଡ଼ିକ ବାଛି ଦେଇ ଭଲ କୋଷ ଲଗାଇବ । ପ୍ରତି ଶହେ ବର୍ଗ ଫୁଟ ଜମିକୁ ଅଧସେର ରସୁଣ ଦରକାର । ଏକର ପ୍ରତି ୩ରୁ ୪ ମହଣ ରସୁଣ ଦରକାର ପଡ଼େ ।

**ରସୁଣ ଲଗାଇବା:**—ବଅଲ, ମାଣ୍ଡିଅ, ମକ୍କା ଓ ଲଙ୍କାମରିଚ ଫସଲ ଉଠାଇବା ପରେ ଜମିକୁ ତିନି ଚାରି ଓଡ ଚାଷ କରି ମାଟି ଗୁଣ୍ଡ କରିଦେବ । ଏକର ପ୍ରତି ୧୦ଗାଡ଼ି ମଲା ଗୋବର ଖତ ମିଶାଇ ମାଟି ଓଲଟ ପାଲଟ କରିଦେବ । ପଟାଳିରେ ଛଅ ଇଞ୍ଚ ଛଡ଼ାରେ ଧାଡ଼ି କାଟିବ । ଧାଡ଼ିକୁ ଦୁଇଇଞ୍ଚ ଗହିରା କରି ପାଙ୍ଗଣ ବୁଣିବା ପରେ ରସୁଣ କୋଳି ଲଗାଇବ ।

**ଖତ ପକାଇବା:**— ପୋଟାଶ ଯୁକ୍ତ ସାର ରସୁଣ ପକ୍ଷରେ ଉପକାରୀ । ଏକର ପ୍ରତି ୧୦ଗାଡ଼ି ( ୫୦ମହଣ ) ପାଙ୍ଗଣ, ୧୦୦ମହଣ ଖତ ଦେଇ ଜମି ତିଆରି କରିବ । ଗଛ ୩-୪ ପତ୍ର ହୋଇ ଗଲେ ପଟାଳି ଖୁସାଇ ଏକର ପ୍ରତି ୩ମହଣ ପିଡ଼ିଆ, ୨ମହଣ ଅମୋନିୟମ୍ ସଲଫେଟ ଦେଇ ଗଛମୂଳକୁ ମାଟି ଟେକିଦେବ ।

**ପାଣିମଡାଇବା :**— ଗଛ ଉଠିବା ଲାଗି ପାଣି ଦେବାକୁ ହୁଏ । ଗଛ ଉଠିଲେ ପଟାଳି ଖୁସାଇ ପିଡ଼ିଆ ଓ ସାର ଦେଇ ପାଣି ମଡ଼ାଇବ । ତାପରେ ପ୍ରତି ୧୦।୧୫ଦିନ ଅନ୍ତରରେ ପାଣି ଦେବ । ରସୁଣ ପାଚିଲା ହେବାଯାଏ ୬।୭ଥର ପାଣି ଦରକାର କରେ ।

**କଞ୍ଚାବଞ୍ଚ :**— ପାଣି ମଡାଇବା ଦ୍ୱାରା ନାନା ପ୍ରକାର ଘାସ ଘାସ ବଢେ । ମାଟି ପାଗ ଦେଖି ଖୁସାଇଦେବ ଓ ଘାସ ବାଛି ଦେବ । ମାଟି ହାଲୁକା ରହିଲେ ରସୁଣ ଭଲ ଫୁଲେ ।

**ଫସଲଉଆଣ :**— ଗଛ ପାଚିଲା ହୋଇ ଆସିଲେ ତା ଅଗରେ ଟିକେ ରସୁଣ ଫଳିବାର ଦେଖାଯାଏ । ପତ୍ର ଗୁଡ଼ିକ ହଳଦିଆ ପଡ଼ିଯାଏ ଏବଂ ରସୁଣ ମାଟି ଉପରକୁ ଅଳ୍ପ ଉଠିଆସେ । ପତ୍ର ଶୁଖିଯାଇ ରସୁଣ ଦେହରୁ ଉପର ଚୋପା ଅପେ ଅପେ ବାହାରି ଆସିଲେ ରସୁଣ ଖୋଳିବା ସମୟ ହେଲାଣି ବୋଲି ଜାଣିବ । ଫସଲ ଲଗାଇବାରୁ ଖୋଳିବା ପର୍ଯ୍ୟନ୍ତ ୪।୫ ମାସ ଲାଗେ ।

**ଖୋଳିବା ଓ ସାଇତି ରଖିବା :—** ଲଙ୍ଗଳ ଲଦ୍ୱାରେ ରସୁଣ ଖୋଳିବ ପେରଗୁଡ଼ିକ କାଟିଦେବା ପରେ ୨୦-୨୫ଟି ରସୁଣ ଗଛ ବେଣୀ ପକାଇ ବାନ୍ଧିଦେବ । ଛାଇ ଜାଗାରେ ବା ଘରେ ଏହି ବଡ଼ା ଗୁଡ଼ିକୁ ବାଉଁଶରେ ଭାରକରି ଝୁଲାଇ ଦେଇ ଶୁଖାଇବ । ରସୁଣ ଓଦା ରଖିବ ନାହିଁ ।

**ଅମଦାନି :—** ସାଧାରଣତଃ ରସୁଣ ଲଗାଯାଇ ଥିବା ବାହାନର ଦଶଗୁଣ ଫଳେ । ବଗିଚା ଜମିରେ ଖତ,ପିଡ଼ିଆ,ପାଣି ଏବଂ ଦେଉକଫଣ ନେଇ ଏକର ପ୍ରତି ୨୦ମହଣରୁ ୩୦ମହଣ ରସୁଣ ମିଳେ ।

ମହୀଶୂର ଷ୍ଟେଟ୍‌ର ବଲରେ ରସୁଣ ଲଗାଯାଏ ଏବଂ ବର୍ଷମଧ୍ୟରେ ଦୁଇ ଥର ଫସଲ ଅମଦାନି କରାଯାଏ ।

ଏକର ପ୍ରତି ୪.ରୁ ୫ ମହଣ ରସୁଣ ଲଗାଗଲେ ସାଧାରଣତଃ ୪୦ରୁ ୫୦ମହଣ ରସୁଣ ଅମଦାନି ହୁଏ । ଖତୁଆ ମାଟିରେ ଏକର ପ୍ରତି ୬୦ମହଣ ପର୍ଯ୍ୟନ୍ତ ରସୁଣ ହୁଏ । ସାଧାରଣତଃ ଡୋଳା ନେଉଫଣ ଫଳରେ ଏକର ପ୍ରତି ୨୦ମହଣ ରସୁଣ ମିଳେ ।

## ରସୁଣର କୀଟ ପତଙ୍ଗ ଶତ୍ରୁ ଓ ରୋଗ

ଥ୍ରିପ୍—( Thrips tabaci ) ଗଛର ପତ୍ରକୁ ଚିଞ୍ଚାଡ଼ି ରସ ଶୋଷି ନେଉଥିବାରୁ ଗଛ ହଟିଯାଏ ।

ଧୂଆଁପତ୍ର ଗୁଣ୍ଡ କିଂବା ଅର୍କ ଛାଣିଦେଲେ ଏହି କୀଟ ଛାଡ଼ିଯାଏ ।

**ଫିମ୍ପି—** ( Mildeu, oidiopsis tawrica )

ଲଙ୍କାମରିଚ ଏବଂ ବାଇଗଣ ଗଛରେ ଲାଗୁଥିବା ଫିମ୍ପି ରୋଗ ରସୁଣକୁ ମଧ୍ୟ ଧରେ । ଶୁଖିଲା ଖରା ପାଗରେ ଏହି ଫିମ୍ପି ବଢେ ।

୧୦-୧୫ ଦିନ ଛଡ଼ାରେ ରସୁଣ ପଟାଳିରେ ବୋର୍ଡୋ ମିକ୍ସ୍ଚର ପିଚକାରି ଦେବ ।

**ରସୁଣ ସାଇତିବା ଅବସ୍ଥାରେ ରୋଗ:** - ରସୁଣକୁ ଭଲରୂପେ ଶୁଖାଇ ନ ରଖିଲେ କିମ୍ବା ରସୁଣ ବହୁତ ପୁରୁଣା ହୋଇଗଲେ କୋଷ ଗୁଡ଼ିକ ନରମ ହୋଇଯାଏ । କେତେକ କୋଷ କାଳିଆ ଖଣ୍ଡରେ ପରିଣତ ହୋଇଯାଏ । ଏହି କାଳିଆ ଖଣ୍ଡ ଏକପ୍ରକାର ଫିମ୍ପିର କୋରକର ସମଷ୍ଟି । ଏଣୁ ରସୁଣ ଭଲ ରୂପେ ଶୁଖାଇ ରଖିବା ଆବଶ୍ୟକ ।

---

# ଲିକ୍
# LEEK
## ALLIUM PORRUM

ଭୂମଧ୍ୟସାଗର ଉପକୂଳବର୍ତ୍ତୀ ଅଞ୍ଚଳ ଲିକ୍ର ଜନ୍ମସ୍ଥାନ ଗ୍ରୀକ୍ ଏବଂ ରୋମାନ୍ମାନେ ଏହାକୁ ବହୁତ ଆଦର କରୁଥିଲେ । ଇଂଲଣ୍ଡ, ଆମେରିକା ଓ କାନାଡ଼ାରେ ଆଜିକାଲି ଏହାର ଚାଷ ସାମାନ୍ୟ ପରିମାଣରେ ଦେଖାଯାଏ । ଲିକ୍ ଗଛର କାଣ୍ଡ ଏବଂ ପତ୍ର ଖାଇବାରେ ବ୍ୟବହାର ହୁଏ ।

ଓଲି ତଳା ଉଠାଇବା ପରି ଲିକ ମଞ୍ଜି ବୁଣି ତଳା ଉଠାଇବ ଓଲି ତଳାପରି ମଧ୍ୟ ଲିକ୍ ତଳା ଲଗାଯାଏ । ଗଛ ବଢ଼ିବା ସଙ୍ଗେ ସଙ୍ଗେ ତା ମୂଳକୁ ମାଟି ଟେକି ଦେଉଥିବ ।

---

# ଶାଲଟ୍

# SHALLOT
## ALLIUM ASCALONICUN

ପଶ୍ଚିମ ଏସିଆ ଶାଲଟ୍‌ର ଜନ୍ମସ୍ଥାନ । ଏହାର ମଞ୍ଜି କ୍ୱଚିତ୍ ଦେଖାଯାଏ । ରସୁଣ ପରି ଏହାର କୋଳି ଲଗାଯାଏ । ପ୍ରଥମେ କୋଳିକୁ ସଫେଇ ଦେବ । ଗଛ ସ୍ୱଚ୍ଛ ଅଙ୍କୁର ଜାତହେଲେ ଦେଢ଼ ହାତ ଛଡ଼ାରେ ଧାଡ଼ି କରିବ । ପ୍ରତି ଧାଡ଼ିରେ ଖୁଣ୍ଟେ ଅନ୍ତରରେ ଗଛ ଲଗାଇବ ।

ଶାଲଟ ରୂପ ପିଆଜ ରୂପ ପରି ।

---

# ଚାଇଭ

# CHIVE
## ALLIUM SCHOENOPRASUM
### N. O. LILIACEAE

ଚାଇଭ ବହୁବର୍ଷଜୀବୀ ଗୁଳ୍ମ । ପତ୍ରଗୁଡ଼ିକ ସରୁଆ, ଫମ୍ପା ଓ ଗୋଲ ଏବଂ ଦେଖିବାକୁ ଘାସପତ୍ର ପରି । ପତ୍ରଗୁଚ୍ଛର ମୂଳ ପିଆଜ ପରି ଫୁଲି ଉଠେ । ଧନ୍ୱନ୍ତରୀ ଗଛପରି ଗଛର ମୂଳକୁ ଚିରି ଲଗାଇ ବଂଶ ବୃଦ୍ଧି କରାଯାଏ । ଗୋଟିଏ ଜାଗାରେ ୪-୫ ବର୍ଷ ଧରି ରହେ । କୁଣ୍ଡରେ ଲଗାଇ ଝରକା ମାଝରେ ରଖିଲେ ଘର ସୁବାସିତ ହୁଏ ।

**ବ୍ୟବହାର :**— ଡାଲି ତରକାରୀ ବଢ଼ାଇବାରେ ଏବଂ ଅଣ୍ଡାରୁ ଅମଲେଟ୍ ( omelettes ) ତିଆରି ବେଳେ ଏହି ପତ୍ରକୁ ଛୁଣ୍ଡାଇ

ପକାଯାଏ । ସ୍କଟ୍‌ଲଣ୍ଡର ଲୋକମାନେ ଏହୁ ପତ୍ରକୁ ବହୁତ ବ୍ୟବହାର କରିଥାନ୍ତି ।

---

# ୱେଲ୍‌ଶ୍ ପିଆଜ
## ବା
# ସିବୋଲ୍
# WELSH ONION, CIBOL
## ALLIUM FISTULOSUM

ସାଇବେରିଆ, ମାଞ୍ଚୁରିଆ ଏବଂ କୋରିଆ ସିବୋଲ୍ ଫସଲର ଜନ୍ମସ୍ଥାନ । ଏହା ମଞ୍ଜିରୁ ଗଛର ମୂଳରୁ ବଂଶ ବୃଦ୍ଧି କରାଯାଏ । ଏହାର ଚାଷ ପିଆଜ ଚାଷ ପରି ।

ଏହାର ପତ୍ର ସାଲାଡ୍ ତିଆରିରେ ବ୍ୟବହାର କରାଯାଏ ।




Printed by Narahari nayak at Bharati Press,
Kendrapara, Cuttack. 1953